# ବନବାସିନୀ

W. Wordsworthଙ୍କ The Lucy Poems ଶୃଙ୍ଖଳାର ପାଞ୍ଚଟି କବିତାର ଓଡିଆ ଭାଷାନ୍ତର

(The Lucy Poems)

ଲଲାଟେନ୍ଦୁ କବି

## ସମୀକ୍ଷା – ୧

ଲୁସି କବିତା ମାଳାର ଅନୁସୃଜନ ସମ୍ବନ୍ଧରେ ପଦେ

ବିଶିଷ୍ଟ ପ୍ରକୃତି କବି ୱଡ୍ସୱର୍ଥଙ୍କ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଅନ୍ତିମ ପର୍ଯ୍ୟାୟରେ ଲିଖିତ ଲୁସି କବିତାମାଳାର ମାର୍ମିକ ଅନୁବାଦ କରିଛନ୍ତି ଲଲାଟେନ୍ଦୁ କବି। ପ୍ରକୃତି ସହ ଏକ ଅନୂଢା କିଶୋରୀର ଆତ୍ମିକ ସଂପର୍କକୁ କବି ତାଙ୍କ ସ୍ୱକୀୟ ଶୈଳୀରେ ତଥା ସମୁନ୍ନତ ଭାଷା ଓ ଛନ୍ଦ ମାଧ୍ୟମରେ ଯେପରି ବର୍ଣ୍ଣନା କରିଛନ୍ତି ତାହା ବାସ୍ତବିକ୍ ସମାଦରଯୋଗ୍ୟ। ତାଙ୍କର ଏଇ ଭାବାନୁବାଦ ମୌଳିକ କବିତାଚୟର କଥାବସ୍ତୁ ବା ଆବେଦନକୁ କୋିଣସି ପ୍ରକାରେ କ୍ଷୁଣ୍ଣ କରୁନାହିଁ ବରଂ ମୋ ବୁଝିବାରେ ଏକ ନିଜସ୍ୱ କୋମଳ, ଲଳିତ ବିଭାବରେ ତାକୁ ଆହୁରି ହୃଦୟସ୍ପର୍ଶୀ କରିଛି। ପ୍ରକୃତି କୋଳରେ, ଲୋକଲୋଚନ ଅଗୋଚରରେ ଲାଳିତା ଲୁସି ଅସମୟରେ ମୃତ୍ୟୁବରଣ କରିଛି ସତ ମାତ୍ର ତା'ର ମୃତ୍ୟୁର ଏକ ମହିମା ମଣ୍ଡିତ ଚିତ୍ର ଆଙ୍କିଛନ୍ତି Wordsworth । ଲୁସି ତାଙ୍କର କଳ୍ପିତା ପ୍ରେମିକା ଓ ତା ନିକଟକୁ ତାଙ୍କର ଯାତ୍ରା ଏକ ରହସ୍ୟମୟ ପରିବେଶ ସୃଷ୍ଟି କରିଛି କବିତାରେ । ନିସର୍ଗଲାଳିତା ଲୁସି ଯେ ଏକ ପରିପୂର୍ଣ୍ଣ ସୃଷ୍ଟି ତାହା ମଧ୍ୟ ବ୍ୟକ୍ତ କରିଛନ୍ତି କବି।

ଏଇ ଅନୁସୃଜନ ପାଠକଙ୍କ ଅନ୍ତରରେ ଆଲୋଡ଼ନ ଆଣିବ, ମୁଁ ଆଶାବାଦିନୀ ।

ପ୍ରାଧ୍ୟାପିକା ସୁକାନ୍ତି ମହାପାତ୍ର

## ସମୀକ୍ଷା – ୨

"Lucy poems" ପ୍ରକୃତି ପ୍ରେମୀ କବି w. wordsworth ଙ୍କର ପ୍ରେମ-ପ୍ରଣୟର ଏକ ସର୍ବକାଳୀନ ଅନବଦ୍ୟ କବିତା । ଏହା କିନ୍ତୁ କୌଣସି ମାନବୀୟ ପ୍ରେମର କାହାଣୀ ନୁହେଁ ।

Wordsworth ଅତି ମାତ୍ରାରେ ଜଣେ ସୌନ୍ଦର୍ଯ୍ୟ ପିପାସୁ (aesthetic) କବି ଥିଲେ। ପ୍ରକୃତିର ନୈସର୍ଗିକ ଶୋଭାକୁ ସେ ମନଭରି ଉପଭୋଗ କରନ୍ତି । ଏଇତ ତାଙ୍କର ପ୍ରେମ ! Lucy ପ୍ରାକୃତିକ ଶୋଭାର ଏକ ପ୍ରତୀକାତ୍ମକ (symbolic) ଚରିତ୍ର। କବିତାରେ "ପ୍ରକୃତି" ଓ "ପ୍ରାକୃତିକ ଶୋଭା" ରେ ବ୍ଯକ୍ତିତ୍ବର ଆରୋପ (porsonified) କରାଯାଇଛି। କବିତାର ବିଦଗ୍ଧ ନାୟକ "ପ୍ରକୃତି" , ଯେ କି ଏ କବିତାରେ କବିଙ୍କ ପ୍ରେମ-ପ୍ରତିଦ୍ୱନ୍ଦୀ । ନିଜେ କବି ମଧ୍ଯ Lucyର ପ୍ରେମାକାଙ୍କ୍ଷୀ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି।

Lucy poems ଶୃଙ୍ଖଳାରେ ୫ଟି କବିତା ରହିଛି ।

ଜଣେ ବିଶ୍ବବିଖ୍ୟାତ କବିଙ୍କର ଇଂରାଜୀ ଭାଷାର କବିତାକୁ ମାତୃଭାଷା ଓଡ଼ିଆରେ ଅନୁବାଦ ଏକ ସହଜ ବ୍ଯାପାର ନୁହେଁ । ମୂଳ ରଚନାର ଅନ୍ତର୍ନିହିତ ଭାବକୁ କେବଳ ବୁଝିଗଲେ ହେବନି , ଅନୁଭବ କରିବାକୁ ହେବ । ନିଜକୁ ଲେଖକଙ୍କର ଚରିତ୍ର ଓ ଦର୍ଶନ ଭିତରେ ହଜେଇ ଦେବାକୁ ହେବ । ଆକ୍ଷରିକ ଅନୁବାଦରେ ମୌଳିକ ଭାବ ପ୍ରତିହତ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଭାବ ପରିସ୍ଫୁଟ ହେଲାଭଳି ଯଥାର୍ଥ ଶବ୍ଦ ଚୟନ ଅନୁବାଦକଙ୍କ ପାଇଁ ଏକ ଆହ୍ବାନ ଅଟେସେ।

ପ୍ରଥମ କବିତାକୁ ଆଲୋଚନାକୁ ନିଆ ଯାଉ। "Strange fits of passion I have known " କବିତାରେ ଲୁସି ପ୍ରତି କବିଙ୍କର ଅଭୂତପୂର୍ବ ଆବେଗ, ଆକର୍ଷଣ ଓ ଗଭୀର ପ୍ରେମ ପ୍ରକାଶ ପାଇଛି । ଏହା ହିଁ କବିଙ୍କର ସ୍ବପ୍ନ — ଅନ୍ତର୍ନିହିତ ଭାବୋଚ୍ଛ୍ୱାସ । ଶୀର୍ଷକର ଏକ ସଫଳ ଅନୁବାଦ କରାଯାଇଛି– "ଅଦ୍ଭୁତ ଏ ସ୍ବପ୍ନ ମୋର" । ଏକ ରମଣୀୟ ସନ୍ଧ୍ୟା। କବି ଲୁସିର କୁଟୀର ନିକଟକୁ ଯାଇଛନ୍ତି । ଆକାଶରେ ଚନ୍ଦ୍ରମା । ସୁନ୍ଦର ପ୍ରକୃତି । ୫ମ ପଦରେ କବି ସ୍ବପ୍ନ ବିଭୋର ହୋଇ କହିଛନ୍ତି –

"In one of these sweet dream I slept
K ind nature's gentelest boon !
And all the while, my eyes I kept
On the descending moon ".

ଏଇ ପଦଟିର ଏକ ମାର୍ମିକ ଅନୁବାଦ କରାଯାଇଛି, ଯାହା ପାଠକ ମନରେ ଆବେଗ ସୃଷ୍ଟି କରେ।

ମଧୁ ଝରା ସେ ସ୍ୱପ୍ନ ଥିଲା   ଶର୍ବରୀର କରୁଣା ଝର

ନେତ୍ର ମୋର ଲାଖି ରହିଲା  ଅସ୍ତଗାମୀ ଚାନ୍ଦ ପର । 5

ଦ୍ବିତୀୟ କବିତାରେ ଲୁସିର ରୂପ ବେଶ୍ ମନୋଲୋଭା। ଇଂଲଣ୍ଡର ଡୋଭ୍ ନଦୀ କୂଳରେ ଏକ ଛୋଟିଆ କୁଡ଼ିଆରେ ସେ ଥାଏ। ତାକୁ କେହି ଜାଣି ନାହାଁନ୍ତି। ତାର ରୂପର କେହି ପ୍ରଶଂସକ ବି ନ ଥାନ୍ତି । ଶେଷରେ ସେ ସମସ୍ତଙ୍କ ଅଜାଣତରେ ମୃତ୍ୟୁ ବରଣ କରିଛି। ତାର ମୃତ୍ୟୁରେ କବି ମ୍ରିୟମାଣ ହୋଇ ପଡିଛନ୍ତି। ସମସ୍ତଙ୍କର ଅଜଣା ଅଶୁଣା ସେହି ନାୟିକା ର କାହାଣୀର ଶୀର୍ଷକ ରଖା ଯାଇଛି, "she dwelt among the untrodden ways" । ଅନୁବାଦରେ Untrodden ways ପାଇଁ ଏକ ସୁନ୍ଦର ପ୍ରତି ଶବ୍ଦ ରଖା ଯାଇଛି, “ନିଛାଟିଆ ରାସ୍ତା ପାରେ" । ପ୍ରଥମ ପଦର ଶେଷ ଦୁଇ ଧାଡ଼ିରେ କୁହା ଯାଇଛି--

"A maid whom there were none to praise
And very few to love"

ଅନୁବାଦରେ ରଖାଗଲା --

"କଥା ପଦେ ହେବା ପାଇଁ ନଥିଲେ କେ ସାହି ଭାଇ

ନଥିଲା ଜୀବନେ କେହି ପ୍ରେମିକଟିଏ"।

"There were none" ଏହାର ଏକ ଯଥାର୍ଥ ଭାବାତ୍ମକ ଅନୁବାଦ ରହିଲା, " ନଥିଲେ କେ ସାହି ଭାଇ" ।

ତୃତୀୟ କବିତା "I travelled among unknown men"ରେ କବିଙ୍କର ମାତୃଭୂମି ପ୍ରତି ପ୍ରଗାଢ ପ୍ରେମ ଭାବ ପ୍ରକାଶ ପାଇଛି । ମାତୃ ଭୂମି ଯେ କେତେ ସୁନ୍ଦର ଓ ଆକର୍ଷଣୀୟ ସେତେବେଳେ ସେ ଅନୁଭବ କରିଛନ୍ତି, ଯେତେବେଳେ ସେ ମାତୃଭୂମି ଠାରୁ ଦୂରରେ ପ୍ରବାସରେ ଅଜଣା ଲୋକଙ୍କ ମେଳରେ ବିତାଇଛନ୍ତି । ଭାବବିହ୍ବଳ ହୋଇ ସେ ମାତୃଭୂମି ଇଂଲଣ୍ଡକୁ ଭରସା ଦେଇଛନ୍ତି, ଆଉ କେବେ ତାକୁ ଛାଡି ଯିବେନି । ପ୍ରବାସରେ ତାଙ୍କର ଏହି ଦୁଃଖାତ୍ମକ ଭାବନାକୁ "melancholy dream" ଭାବରେ ବର୍ଣ୍ଣନା କରିଛନ୍ତି । କବିତାର ତୃତୀୟ ପଦରେ କବି ମନେ ପକାଇଛନ୍ତି ମାତୃଭୂମିର ମନୋରମ

ପ୍ରକୃତିକୁ — ତାଙ୍କ ପ୍ରିୟତମା ଲୁସିକୁ । ସେହି ପଦଟିର ଏକ ମର୍ମସ୍ପର୍ଶୀ ଅନୁବାଦ---

"ବିଜନ ଏ ବନ ତଳ ଝରଣା ନିକଟ
ତୋଟାମାଳେ ରହିଛି ମୋ ହୃଦୟ ସ୍ପନ୍ଦନ
ପ୍ରିୟା ଚିତାନଳ ପାରେ ଥୁଆ ମାଟି ଘଟ
ବିଞ୍ଚୁଅଛି ମନ କିଣା କର୍ପୂର ଚନ୍ଦନ।"

ଚତୁର୍ଥ କବିତାରେ ଲୁସି - ଛୋଟ ବାଳିକାଟିଏ - ଫୁଲଟିଏ ପରି ପ୍ରକୃତି କୋଳରେ ବଢ଼ିଛି । ପ୍ରକୃତି ବାଳିକାଟିକୁ ଏକାନ୍ତ ନିଜର କରି ରଖିବାକୁ ଚାହିଁଛି । ପ୍ରକୃତି ଦୃଷ୍ଟିରେ ବାଳିକାଟି ---"A lovelier flower" । ଏହି ବାକ୍ଯାଂଶଟିର ଏକ ମନଛୁଆଁ ଅନୁବାଦ କରାଯାଇଛି – "ଫୁଲ କୁମାରୀ" ।

"Nature" ଶବ୍ଦକୁ ଆମେ ସାଧାରଣତଃ ଓଡିଆରେ "ପ୍ରକୃତି" କହିଥାଉ । କିନ୍ତୁ ଭାରତୀୟ ଭାଷାମାନଙ୍କ ରେ ପ୍ରକୃତି ସ୍ତ୍ରୀଲିଙ୍ଗ ଶବ୍ଦ ଓ Wordsorthଙ୍କ କବିତାରେ nature, ପ୍ରକୃତି ଏକ ପୁରୁଷ । ତେଣୁ ଅନୁବାଦକ ପ୍ରକୃତି ସ୍ଥାନରେ "ନିସର୍ଗ" ଶବ୍ଦ ବ୍ଯବହାର କରିଛନ୍ତି, ଯାହା ପୁଂଲିଙ୍ଗବିଚକ ଅଟେ ।

ମନକୁ ଏକ ପ୍ରଶ୍ନ ଆସେ କବି କବିତାର ଶୀର୍ଷକ  "ସେ କୁଟୀର ନିର୍ଝରିଣୀ ତୀର" କାହିଁକି ରଖିଲେ !

ଶେଷ କବିତାଟି "A slumber did my spirit seal" । ପ୍ରତିକାର ମୃତ୍ୟୁରେ କବି ମ୍ରିୟମାଣ ହୋଇ ପଡିଛନ୍ତି । ତାଙ୍କ ଶରୀର ଓ ମନ ଶିଥିଳ ହେଇଯାଇଛି । ସତେ ଯେପରି ସେ ଗଭୀର ନିଦ୍ରାରେ ଶୋଇ ଯାଇଛନ୍ତି । ଶୀର୍ଷକରେ ଏକ ଭାବାତ୍ମକ ଅନୁବାଦ ରଖାଯାଇଛି– "ଶୂନ୍ୟ ବିନିଦ୍ରତା" । ଏଠାରେ ଚୋରି ଯାଇଥିବା  ସୁନୀଦ୍ରା ବା slumberୟ ପ୍ରତିଶବ୍ଦ "ବିନିଦ୍ରତା" ରଖା ଯାଇଛି । "ଶୂନ୍ୟ" ଶବ୍ଦଟି ସୂଚାଇ ଦେଉଛି ପ୍ରେମିକାର ବିୟୋଗରେ ସମସ୍ତ ଇନ୍ଦ୍ରିୟ ନିଷ୍କ୍ରିୟ ହୋଇ ଯାଇଛି । ଏକ ବିରାଟ ଶୂନ୍ୟତାର ଅନୁଭବ ।

ପାଠକୀୟ ଅଭିମତ ରେ ଶେଷରେ ଏତିକି କହିବି ଏହା ଏକ ସଫଳ ଅନୁବାଦ ଅଟେ। ଶବ୍ଦ ଚୟନରେ ଅନୁବାଦକ ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ସହିତ ଧୀମତ୍ତାର ପରିଚୟ ଦେଇଛନ୍ତି।

ଶୁଭମସ୍ତୁ
ଶ୍ରୀ ଦୁର୍ଯ୍ୟୋଧନ ସ୍ୱାଇଁ, ଅବସରପ୍ରାପ୍ତ ପ୍ରଧାନଶିକ୍ଷକ

## ବିଷୟ ସୂଚନା:

ଏ ପୁସ୍ତକରେ ଅଛି ପ୍ରଥମେ William Wordsworthଙ୍କ Lucy poens ଶୃଙ୍ଖଳାରେ ରଚିତ ପାଞ୍ଚଟି ଯାକ କବିତାର ମକ୍ତ ଉତ୍କଳୀୟ ମର୍ମାନୁବାଦ ଓ ତା ପରେ ସେହି ପାଞ୍ଚଟି ଯାକ ମୂଳ ଇଂରାଜୀ କବିତା ।

ବିନୀତ
ଲଲାଟେନ୍ଦୁ କବି, ଅନୁବାଦକ

## 1/5 ଅଦ୍ଭୁତ ଏ ସ୍ୱପ୍ନ ମୋର
============

ସାହସ କରି କହିବି ଆଜି
ବିଲକ୍ଷଣ ଭାବ ମୋ ମନେ ।
ମୋ ପରେ ଯାହା ପଡିଛି ଭାଜି
କହିବି ଭଲ ପ୍ରେମିକ ଜନେ । 1

ପାଉଥିଲା ସେ ଅନେକ ଭଲ
ଉଦ୍ୟାନର କୁସୁମ ଭଳି
ସଞ୍ଜ ହେଲେ ତୋଳି ମୁଁ ଫୁଲ
ଯାଉଥିଲି ତା ଗ୍ରାମକୁ ଚଳି । 2

ମୁକ୍ତ ନଭେ ଚନ୍ଦ୍ର ପରେ
ପଡିଲା ଥରେ ମୋହର ଆଖି
ଅଶ୍ୱ ମୋର ଛୁଟିଲା ଖରେ
ଯେ ପ୍ରିୟ ପଥେ ଥିଲା ମୋ ସାକୀ । 3

କାନନଭୂଇଁ ପଡିଆ ଡେଇଁ
ଚଢିଲୁ ଆମେ ଅଦ୍ରି ଶିରେ
ଅସ୍ତଗାମୀ ଚନ୍ଦ୍ର ନଇଁ
ପାଖରୁ ପାଖ ଆସିଲା ଧୀରେ । 4

ମଧୁ ଝରା ସେ ସ୍ୱପ୍ନ ଥିଲା
ଶର୍ବରୀର କରୁଣା ଝର
ନେତ୍ର ମୋର ଲାଖି ରହିଲା
ଅସ୍ତଗାମୀ ଚାନ୍ଦ ପର । 5

••
ପିଟିଲା ପାଦ ଅଶ୍ୱ ରୋଷେ
କଚାଡି ଗଲା ନ ରହି ଥରେ
ଚନ୍ଦ୍ର ଖସି ପଡିଲା ଶେଷେ
ମାନସୀ ବାଳା କୁଡିଆ ପରେ । **6**

ଚମକି ଗଲି ଦୋହଲି ଗଲା
ଶଙ୍କିତ ମୋ ପ୍ରେମିକ ମନ
ଚନ୍ଦ୍ର ଆଜି ଇଏ କି କଲା
ଗଲା କି ମୋର ପ୍ରିୟା ଜୀବନ । **7**

ସମାପିତ **202405180821**

**2/5** ନିଛାଟିଆ ରାସ୍ତାପାରେ ରହୁଥିଲା ସିଏ
====================

ନିଛାଟିଆ ରାସ୍ତା ପାରେ  ପକ୍ଷୀ ବସା ଗଛ ପରେ
ଛୋଟ ସେ କୁଟୀରେ ଥିଲା ବାଳିକା ସିଏ;
କଥା ପଦେ ହେବା ପାଇଁ ନ ଥିଲା କେ ସାହି ଭାଇ,
ନ ଥିଲା ଜୀବନେ କେହି ପ୍ରେମିକଟିଏ || -୧-

ଘର ପାଖେ ତାର ନିତି  ଫୁଟୁଥିଲା ଜାତି ଜାତି
ମଲ୍ଲିକା ମଧୁ ମାଳତୀ କଦମ୍ବ ମାଳ;
ଆକାଶରେ କୁଆଁ ତାରା  ଦିଶେ ଯଥା ମନୋହାରା
ତହୁଁ ବଳି କେଡ଼େ ତୋରା ଶୋଭେ ସେ ଫୁଲ ||-୨-

ଏକାକିନୀ  ଥିଲା ଝିଅ   ଜାଣିଛ ତ କିଏ କୁହ
ଦେଖିଲା କେବେ ତା ଦେହ ମଶାଣି ମାଟି ?
ସେଇଠି ସେ ଅଛି ଶୋଇ;   ମୋ ଆଖିକୁ ରହି ରହି
ଦିଶେ ସେହି  ଚାନ୍ଦମୁହିଁ ଟିକି ମୁହଁଟି || -୩-

ଲଲାଟେନ୍ଦୁ କବି   **201702112345**

**3/5** ଅଚିହ୍ନା ଅଜଣା ଗ୍ରାମ ଦେଶ ବୁଲି ବୁଲି

====================

ଅଚିହ୍ନା ଅଜଣା ପଲ୍ଲୀ ପୁରଦ୍ୱାର ବୁଲି
ଦେଶ ଦେଶ ସିନ୍ଧୁପାରି ଦୂର ଦୂର ଯାଏ
ଦେଖିବା ଆଗରୁ ଜମା ଜାଣି ମୁଁ ନ ଥିଲି
ମାତୃଭୂମି ତୋତେ ମୁହିଁ କେତେ ଭଲ ପାଏ । **1**

ସେହି ଦିନ ବହୁ ଦୂରେ ଯାଇଅଛି ରହି,
ଛାଡି ତୋତେ ପ୍ରବାସେ ମୁଁ ଯିବି ନାହିଁ ଆଉ,
ତୋ ଲାଗି ବଢୁଛି ପ୍ରେମ ଦେଲି ସତ କହି
ଫେରି ଦେଖେ ଅହରହ, ବଢି ଚାଲି ଥାଉ । **2**

ବିଜନ ଏ ବନତଳ ଝରଣା ନିକଟ
ତୋଟାମାନେ ରହିଛି ମୋ ହୃଦୟସ୍ପନ୍ଦନ
ପ୍ରିୟା-ଚିତାନଳ ପାଶେ ଥୁଆ ମାଟି ଘଟ
ବିଞ୍ଚୁଅଛି ମନଜିଣା କର୍ପୂର ଚନ୍ଦନ । **3**

ତୋ ଆଲୋକେ ଦିଶେ ମୋର ହଜିଲା ନିଶୀଥ
ପ୍ରେୟସୀର ଖେଳପଦା ତୋଟା ଗୁଳ୍ମ ରାଜି,
ସେଇଠି ଏବେ ବି ସେହି ପାଦପ ପୂରିତ
ଦେଖୁଥିଲା ପ୍ରିୟାନେତ୍ର, ମୁଁ ଦେଖୁଛି ଆଜି । **4**

ଲଲାଟେନ୍ଦୁ କବି **202405181818**

## 4/5 ସେ କୁଟୀର ନିର୍ଝରିଣୀ ତୀର

================

ବହୁ ବର୍ଷ ଥିଲା ସେଠି ସେ
ଖରା ବରଷା ଖାଇ,
ନିସର୍ଗ କହିଲା ଏ ଫୁଲ
ଆନ ଜଗତେ ନାହିଁ ।
ଫୁଲକୁମାରୀକି ନେବି ମୁଁ
ତୋଳି ମୋର ସଦନେ
ସେ ହେବ ମୋହର ମୁଁ ଥିବି
ତାର ଚିତ୍ତଗହନେ । 1

ମୁଁ ହେବି ତାହାର ଦୀଧିତି
ଗତି ମତି ବିଧାନ
ଏହି, ଯା ଘର ଏ ଝରଣା
ବନ ଗିରି କାନନ
ସସାଗରା ଧରା ପ୍ରାଙ୍ଗଣେ
ବିସ୍ତାରିତ ଗଗନେ
ପରାକ୍ରମ ମୋର ଲଭିବ
ସୁଖଦୁଃଖକଷଣେ । 2

ସେ ଥିବ ସଲୀଳା ନିରୀହା
ବନହରିଣୀ ପରି
ପର୍ବତପ୍ରପାତେ ଏ ବନ-
ପ୍ରସ୍ଥେ ପ୍ରସାଦେ ଭରି;
ବିଜନତା ହେବ ତାହାର
ମୌନ ସଂଗୀତଧାରା
ନନ୍ଦନବର୍ଦ୍ଧନ ଚନ୍ଦନ
ଗନ୍ଧ ଧରଣୀ ସାରା । 3

ବାଦଲର ଦୋଳା ବୁଲାଇ
ତାକୁ ନେବ ଆକାଶେ
ତାକୁ ଦେଖି ମଥା ନଇଁବେ
ତରୁଲତା ବତାସେ;
ପ୍ରଭଞ୍ଜନେ ବି ସେ ଲଭିବ
ଅନୁକମ୍ପା ମାଧୁରୀ
ଜଳସ୍ଥଳବନପର୍ବତେ
ଚିର ସୃଷ୍ଟିଚାତୁରୀ । **4**

ନିଶାର୍ଦ୍ଧର ଗ୍ରହ ନକ୍ଷତ୍ର
ହେବେ ତାହାର ପ୍ରିୟ
ଶୁଣିବ ସେ ଦିବ୍ୟ ନିସ୍ୱନ
ଗୁପ୍ତ ଅବର୍ଣ୍ଣନୀୟ,
ମୃଦୁ ଗୁଞ୍ଜରଣେ ନିର୍ଝର
ଯାହା କହେ ଗୌରବେ
ସବୁ ଶୁଣି ସବୁ ବୁଝିବ
କର୍ଣ୍ଣ ପାତି ନୀରବେ । **5**

ପୁଣ୍ୟମହାନନ୍ଦ କରିବ
ଯତ୍ନେ ତାର ପୋଷଣ
ଲଙ୍ଘିବ ଆକାଶ ସୀମା ତା
ଅନ୍ତହୀନ ହର୍ଷଣ;
ମୋ ପାଶୁ ଲଭିବ ଏପରି
ଭାବ ବାଞ୍ଛିତା ବାଳା
ଚିରକାଳ ସିଏ ସାଜିବ
ମୋର ଗଳାର ମାଳା । **6**

ଏହି ପରି କହି ନିସର୍ଗ
ନେଲା ପ୍ରିୟାକୁ ଡୋଳି,
ଯାଇଅଛି ପ୍ରିୟା ମୋଠାରେ
ପ୍ରୀତିଚନ୍ଦନ ବୋଳି
ଭାଙ୍ଗି ପଡିଅଛି ତାହାର
ଶୂନ୍ୟ ପର୍ଣ୍ଣକୁଟୀର
ଛାଡୁ ନାହିଁ କିନ୍ତୁ ମୋତେ ତା
ପ୍ରିୟ ଝରଣାତୀର । **7**

ଲଲାଟେନ୍ଦୁ କବି **202485260236**

**5/5** ଶୂନ୍ୟବିନିଦ୍ରତା

ଦୁଇ ନେତ୍ରୁ ମୋ ହଜିଛି ସ୍ୱପ୍ନ ରାଜି
ନାହିଁ କିଛି ନରସରାସୁରେ ମୋର ଭୟ
ଛିନ୍ନ ତାହାର ଚିତ୍ତଚେତନ ଆଜି
ମିଥ୍ୟା ତା ଦେହ-ସ୍ପର୍ଶର ଅଭିନୟ **। 1**

ସ୍ପନ୍ଦନହୀନ ତାହାର ହୃଦୟ କନ୍ଦ
ବସୁଧା ପୃଷ୍ଠେ ନାହିଁ ତାର ପରିଚୟ,
ଶବ୍ଦ ସ୍ପର୍ଶ ରୂପ ରସ କି ବା ଗନ୍ଧ
ପଞ୍ଚଭୂତର ନିହିତ ତତ୍ତ୍ୱଚୟ **। 2**

ଲଲାଟେନ୍ଦୁ କବି **20240526284**5

ଅନୁବାଦ ସମାପ୍ତ

The original writings of William Wordsworth are given below.

1/5
Strange fits of passion have I known

Strange fits of passion have I known,
And I will dare to tell,
But in the lover's ear alone,
What once to me befel. 1

When she I loved looked every day
Fresh as a rose in June,
I to her cottage bent my way,
Beneath an evening moon. 2

Upon the moon I fixed my eye,
All over the wide lea;
With quickening pace my horse drew nigh
Those paths so dear to me. 3

And now we reached the orchard-plot,
And, as we climbed the hill,
The sinking moon to Lucy's cot
Came near, and nearer still. 4

In one of those sweet dreams I slept,
Kind Nature's gentlest boon!
And, all the while, my eyes I kept
On the descending moon. 5

My horse moved on; hoof after hoof
He raised, and never stopped:
When down behind the cottage roof
At once, the bright moon dropped. 6

What fond and wayward thoughts will slide
Into a Lover's head!
“O mercy!” to myself I cried,
“If Lucy should be dead!” 7

2/5
She dwelt among the untrodden ways
She dwelt among the untrodden ways
Beside the springs of Dove,
A Maid whom there were none to praise
And very few to love. 1

A violet by a mossy stone
Half-hidden from the Eye!
—Fair, as a star when only one
Is shining in the sky. 2

She lived unknown, and few could know
When Lucy ceased to be;
But she is in her Grave, and, oh,
The difference to me! 3

3/5
I travelled among unknown men
I travelled among unknown men,
In lands beyond the sea;
Nor, England! did I know till then
What love I bore to thee. 1

'Tis past, that melancholy dream!
Nor will I quit thy shore
A second time; for still I seem
To love thee more and more.2

Among thy mountains did I feel
The joy of my desire;
And she I cherished turned her wheel
Beside an English fire. 3

Thy mornings showed, thy nights concealed
The bowers where Lucy played;
And thine too is the last green field
That Lucy's eyes surveyed.

4/5

Three years she grew in sun and shower (The Education of Nature)

Three years she grew in sun and shower,
Then Nature said, “A lovelier flower
On earth was never sown;
This Child I to myself will take,
She shall be mine, and I will make
A Lady of my own. 1

“Myself will to my darling be
Both law and impulse, and with me
The Girl, in rock and plain,
In earth and heaven, in glade and bower,
Shall feel an overseeing power
To kindle or restrain. 2

“She shall be sportive as the fawn
That wild with glee across the lawn
Or up the mountain springs;
And hers shall be the breathing balm,
And hers the silence and the calm
Of mute insen sate things. 3

“The floating clouds their state shall lend
To her; for her the willow bend,
Nor shall she fail to see

Even in the motions of the Storm
Grace that shall mould the Maiden's form
By silent sympathy. 4

“The stars of midnight shall be dear
To her; and she shall lean her ear
In many a secret place
Where rivulets dance their wayward round,
And beauty born of murmuring sound
Shall pass into her face. 5

“And vital feelings of delight
Shall rear her form to stately height,
Her virgin bosom swell,
Such thoughts to Lucy I will give
While she and I together live
Here in this happy dell.” 6

Thus Nature spake—the work was done—
How soon my Lucy's race was run!
She died and left to me
This heath, this calm and quiet scene,
The memory of what has been,
And never more will be. 7

5/5
A slumber did my spirit seal
A slumber did my spirit seal;
I had no human fears:
She seemed a thing that could not feel
The touch of earthly years.

No motion has she now, no force;
She neither hears nor sees;
Rolled round in earth's diurnal course
With rocks, and stones, and trees!

